# ଇତିହାସ କ'ଣ ?

(ଏକ ପ୍ରଶ୍ନକାରୀ କାହାଣୀ)



ଖୁସିରେ ପଢ଼ିବା ଅଭିଯାନ

ଭାରତ ଜ୍ଞାନ ବିଜ୍ଞାନ ସମିତି

ଇତିହାସ କ'ଣ
(ଏକ ପ୍ରଶ୍ନକାରୀ କାହାଣୀ)
ମୂଳ ଲେଖା : ଶ୍ରୀ ସୁବ୍ରମଣ୍ୟମ୍ (ଏକଲବ୍ୟ)
ଅନୁରଚନା : ବିନୟକୃଷ୍ଣ ପଟ୍ଟନାୟକ
ଅଙ୍କନ : ଅସିତ୍ ଦାସ
ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୨, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪).୪୭୦୮୯୧

ଅଙ୍ଗସଜ୍ଜା : ଓରିକନ୍ କମ୍ପ୍ୟୁଟର୍ସ୍, ଭୁବନେଶ୍ୱର ।
ମୁଦ୍ରଣ ପଦ୍ମା କମର୍ସିୟାଲ୍, ଭୁବନେଶ୍ୱର

ସହଯୋଗ ରାଶି : ତିନି ଟଙ୍କା ମାତ୍ର
ପ୍ରକାଶ କାଳ : ଜାନୁଆରୀ ପହିଲା ୧୯୯୭

ଏହି ପୁସ୍ତିକାଟି ' **ଖୁସିରେ ପଢିବା ଅଭିଯାନ** ' (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗଣ୍ଡାଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।

● **What is History** ● Original Hindi Text - Subramanyam ● Oriya Transcreation - Binaya Krushna Pattanayak ● Illustration - Asit Das ● Published by B.G.V.S., Orissa for Jan Vachan Andolan ● Price - Rs. 3.00 ● Publication Period - 1st Janauary 1997.

# ଭୂମିକା .....



ଆମେ ସମସ୍ତେ ଇତିହାସ ପଢ଼ିଛେ । ଆମ ରାଜ୍ୟର ଅତୀତ କଥା ଜାଣିଲେ ଆମକୁ କେତେ ଖୁସି ଲାଗେ ! ବୀର ଓଡ଼ିଆଙ୍କର ଜୟଯାତ୍ରା, ସାଧବପୁଅଙ୍କ ବଣିଜବେପାର, ଖୋର୍ଦ୍ଧା ପାଇକଙ୍କ ସାହସିକତା, ଓଡ଼ିଶାର ଶ୍ରେଷ୍ଠ କୃତୀ - କୋଣାର୍କ ମନ୍ଦିର ତିଆରି, ଭୀମଭୋଇଙ୍କ ସାହିତ୍ୟ ସୃଷ୍ଟି, ପଠାଣିଙ୍କର ଜ୍ୟୋତିର୍ବିଜ୍ଞାନ, ଓଡ଼ିଶାର ଗାଁ ଜୀବନର ସରଳତା, ପରମ୍ପରା, ପର୍ବପର୍ବାଣୀ - ଏ ସବୁ ଜାଣିଲେ ମନରେ କେତେ ପୁଲକ ଜାଗେ ।

ଇତିହାସ ପୃଷ୍ଠାରେ ଏ ସବୁ ଅଧ୍ୟାୟ ଅତି ମଧୁର ଲାଗେ, କିନ୍ତୁ ଖୋଲା ମନ ନେଇ ବିଚାରିଲେ, ଅସଲି ସତଟିକୁ ଖୋଜିବାକୁ ଚେଷ୍ଟା କଲେ, ମନରେ ଅନେକ ପ୍ରଶ୍ନ ଉଠେ । ଇତିହାସ ପୃଷ୍ଠାରେ ଅତୀତର ଯେଉଁ କାହାଣୀ ଲେଖାଯାଇଛି, ଏଥିରେ

ସମାଜର ଅସଲି ଛବିକୁ କେତେଦୂର ଅଙ୍କାଯାଇଛି ? ଏଗୁଡ଼ିକ କାହା ବିଷୟରେ ଲେଖାଯାଇଛି ? ଏଥିରେ ସମାଜର ସାଧାରଣ ବ୍ୟକ୍ତିର ପ୍ରକୃତ ଅବସ୍ଥାକୁ ସୁଚା ଯାଇଛି ନା ରାଜାରାଜୁଡ଼ାଙ୍କର ପ୍ରଶସ୍ତି ଗାନ କରାଯାଇଛି ? ଆମେ ଇତିହାସ କାହିଁକି ପଢୁଛେ ? ଅତୀତର ସମାଜରେ ବ୍ୟକ୍ତିର ଅବସ୍ଥା ଓ ଅବଦାନକୁ ଜାଣିବାକୁ ଚାହୁଁଛେ । କିନ୍ତୁ ଏପରି ପ୍ରଭାବଶାଳୀ ରାଜା, ଜମିଦାରଙ୍କ ଗୁଣ ଗାନ କରିବା ଛଡ଼ା ଆମେ ସାଧାରଣ ମଣିଷର ଅବସ୍ଥା ବା ଅବଦାନକୁ ଜାଣିପାରୁଛେ କି ? କୋଣାର୍କ ମନ୍ଦିର କହିଲେ ଆମେ ସାଙ୍ଗେ ସାଙ୍ଗେ ରାଜା ଲାଙ୍ଗୁଳା ନରସିଂହ ଦେବଙ୍କ ନାଁ ଧରୁଛେ । ଖଣ୍ଡଗିରି ଗୁମ୍ଫା କହିଲେ ଖାରବେଳଙ୍କ ଗୁଣ ଗାଉଛେ ।

କିନ୍ତୁ କେଉଁ ରାଜା ଏ ସବୁ କିର୍ତ୍ତୀ ବନାଇଥିଲେ ? ଯେଉଁ ଶିଳ୍ପୀମାନେ ହାତ, ମୁଣ୍ଡକୁ ଲଗାଇ ଏ ସବୁ କିର୍ତ୍ତୀ ସ୍ଥାପନ କଲେ, ଇତିହାସ ବହିରେ ସେମାନଙ୍କ କାମ ବିଷୟରେ କିଛି ବି ଲେଖାଯାଇନାହିଁ । ଅତଏବ ଆମର ଏହି ଇତିହାସ ଲେଖା ଓ ପଢ଼ା ଅସଲ ଇତିହାସ ଠାରୁ ଅଲଗା ଦିଗରେ ହୋଇଛି । ଏହା କେବଳ ଧନୀ, ପ୍ରଭାବଶାଳୀ ଲୋକଙ୍କର ପ୍ରଚାରପତ୍ର ପରି ମନେ ହେଉଛି ।

ଏମାନଙ୍କ ରାଜତ୍ୱର କଳଙ୍କ ଅଧ୍ୟାୟଗୁଡ଼ିକ କେଉଁଠି ବି ସୂଚାଯାଇନାହିଁ । ଫଳରେ ଏମାନେ ବାସ୍ତବିକତା ଠାରୁ ଯଥେଷ୍ଟ ବେଶୀ ଅତିରଞ୍ଜିତ ଆଦର ପାଉଛନ୍ତି । ଅଥଚ ଖଟିଖିଆ ଶ୍ରେଣୀ ଯିଏକି ବଞ୍ଚିବାକୁ ସଂଘର୍ଷ କରୁଥିଲେ, ସେମାନଙ୍କ ଅବସ୍ଥା ଖରାପତର ହୋଇ ଆଜି ମୁମୂର୍ଷୁ ଅବସ୍ଥାରେ ପହଞ୍ଚିଛି ।

ଆମର ଏ ଇତିହାସ ବଦଳିବା ଦରକାର । ଆମେ ଚାହୁଁ ସମାଜରେ ପ୍ରତ୍ୟେକ ସାଥି ମଣିଷ ଜୀବନରେ ସୁଖ, ଶାନ୍ତି ଓ ସ୍ଥିରତା । ଏହି ବାଟଟି ପାଇବା ପାଇଁ ଇତିହାସ ଆମ ପାଇଁ ଏକ ନିରପେକ୍ଷ ସାକ୍ଷୀ ହେବ । କ୍ଷମତା, ରାଜନୀତି, ଧର୍ମ, ଜାତି, କୁସଂସ୍କାର ଠାରୁ ଊର୍ଦ୍ଧ୍ୱରେ ଏହା ଏକ ସମାଜ ଓ ବ୍ୟକ୍ତିପ୍ରେମୀ ଲିପିକାର ହେବ । ଇତିହାସର ରୂପ ଓ ଢିଗକୁ ଏହି ଧାରାରେ ସଜାଡ଼ିବାକୁ ଚେଷ୍ଟା କରିବା । ଇତିହାସ "ଇତିହାସ" ହେଲେ ସମାଜ, ପ୍ରକୃତି ଓ ବ୍ୟକ୍ତିର ଏକ ଆଶାଜନକ ବିକାଶ ହୋଇପାରିବ ।






# ଇତିହାସ କ'ଣ ?

ଦିନେ ମୁଁ କାନ୍ଧରେ ଝୁଲାମୁଣାଟିଏ ପକେଇ ଥାଏ । ଖଣ୍ଡିଏ ବହି ପଢ଼ି ପଢ଼ି ସହରର ଗୋଟିଏ ଜଣାଶୁଣା ରାସ୍ତାରେ ଚାଲିଥାଏ । ବହିଟି ଥିଲା ଇତିହାସ ଉପରେ । ଯେଉଁ ଅଧ୍ୟାୟଟି ମୁଁ ପଢୁଥିଲି, ସେଥିରେ ଥିଲା ସମ୍ରାଟ ଅଶୋକ କରିଥିବା ବିଭିନ୍ନ କାମର ତାଲିକା । ଅଶୋକ ଯୁଦ୍ଧ କରିବା ଛାଡ଼ିଦେଲେ; ଅହିଂସାର ବାଟ ବାଛିନେଲେ; ନିଜ ପ୍ରଜାଙ୍କର ଦୁଃଖ ଦୂର କରିବା ପାଇଁ ନାନା କାମ କଲେ ।

ଅଶୋକ ଲମ୍ବା ସଡ଼କ ବନାଇଲେ । ଏହାର ଦୁଇ କଡ଼ରେ ଗହଳିଆ ଛାଇଦେଲା ଗଛ ଲଗାଇଲେ; କୋଷେ ଲେଖାଁ ଦୂରରେ କୂଅ ଖୋଳାଇଲେ । ମୁଁ ବହି ପଢ଼ିବାରେ ମଜି ଯାଇଥିଲି । ଏତିକିବେଳେ ବଡ଼ ଟ୍ରକଟିଏ ଜୋରରେ ମାଡ଼ି ଆସିଲା । ମୁଁ ଡ଼ରିଯାଇ ରାସ୍ତାକଡ଼କୁ ଓହ୍ଲାଇଗଲି । କିଛି ସମୟ ପରେ ନିଜକୁ ନିଜେ ପଚାରିଲି – ଆରେ ! ତୋର ପାଦ ତଳେ କ'ଣଟା କିରେ ? ମନରୁ ଶୁଣିବାକୁ ପାଇଲି – ପାଦ ତଳେ ତ ଚପଲ ଅଛି; ଆଉ ତା ତଳେ ରାସ୍ତା । ମୁଁ କହିଲି –

ଆରେ ଭାଇ, ଏଇଟା ଆଉ ସେହି ସଡ଼କ ନୁହେଁ ତ, ଯାହାକୁ ସମ୍ରାଟ ଅଶୋକ ବନେଇଥିଲେ ? ମନରୁ ଉତ୍ତର ମିଳିଲା - ଇତିହାସ ବହି ପଢ଼ି ପଢ଼ି ତୋ ମୁଣ୍ଡଟା କ'ଣ ହେଲାଣି ?

ତୋ ଜେଜେ ଏମିତି କେଉଁ ମହାନ୍ ଲୋକ ଥିଲେ ଯେ, ସମ୍ରାଟ ଅଶୋକ ତାଙ୍କୁ ଭେଟିବାକୁ ଆସୁଥିଲେ ଓ ତୋ ଗାଁ ଯାଏଁ ସଡ଼କ ତିଆରି କରିଦେଇଥିଲେ ? ତୋ ବାହା ହେବାର ତିନି ବର୍ଷ ଆଗରୁ ହିଁ ଏହି ରାସ୍ତା ତିଆରି ହୋଇଛି । ମନେ ନାହିଁ ? କମିଶନର ସାହେବ କିପରି ଧୂମଧାମରେ ଏହା ଆରମ୍ଭ କରିଥିଲେ ? ତା' ଆଗରୁ କ'ଣ ଏହି ଇଲାକାରେ କିଛି ରାସ୍ତା ଥିଲା ? ଆଉ ସମ୍ରାଟ ଅଶୋକଙ୍କ ବେଳେ ଏମିତିକା ପିଚୁ ଆଉ ରୋଲର୍‌ର ସୁବିଧା କେଉଁଠି ଥିଲା ?

ମୋର ମନେପଡ଼ିଗଲା, କିଛି ବର୍ଷ ତଳେ ଗାଁରୁ ସହରଯାକେ ଗୋଟିଏ ମାଟି ରାସ୍ତା ଥିଲା । ଆମେ ବିଲ ହିଡ଼ରେ ହିଁ ଚାଲି ଚାଲି ଯାଉଥିଲୁ । ହାଟରେ କେବେ କିଛି କିଣାବିକା କରିବାର ଥିଲେ, ଶଗଡ଼ରେ ବସି ମାଟି ରାସ୍ତାରେ ଯାଉଥିଲୁ ।

ମୁଁ ଭାବିବାରେ ଲାଗିଲି । ଏହି ରାସ୍ତାଟି ହିଁ କାହିଁକି ପକ୍କା ହେଲା ? ଅଥଚ ବାକି ସବୁ ରାସ୍ତା କାହିଁକି ମାଟିରାସ୍ତା ଭାବରେ ରହିଗଲା ? ଗୋଟିଏ ରାସ୍ତାକୁ ପକ୍କା କରାଯିବାର କାରଣ କ'ଣ ? ଏଥିରୁ କାହାକୁ କ'ଣ ଫାଇଦା ମିଳେ ? ଏଥିରୁ ଫାଇଦା ଉଠାଇବା ପାଇଁ କ'ଣ କରିବାକୁ ପଡ଼େ ? ରାସ୍ତାକୁ ପକ୍କା କରିବା ପାଇଁ କେଉଁ କେଉଁ ଜିନିଷ ଲୋଡ଼ା ? କେତେ ଲୋକ ଲାଗିବାକୁ ପଡ଼ିବ ?

ଏଥିରେ କେତେ ଖର୍ଚ୍ଚ ହେବ ? ସଡ଼କଟା କଚ୍ଚା ରହିଲେ କି ଅସୁବିଧା ହେଉଛି ? ଏଇଟା ପକ୍କା ହେବା ପରେ କ'ଣ କ'ଣ ବଦଳିଛି ? ମାଟି ରାସ୍ତାଟା କିଏ, କେବେ ବନେଇଥିବେ ? ରାସ୍ତା କେତେ ପ୍ରକାରର ଓ ସେଗୁଡ଼ିକ ମଧ୍ୟରେ କ'ଣ ଫରକ ଅଛି ? କିଏ ଏହା ଠିକ୍ କରନ୍ତି, କେଉଁ ରାସ୍ତାକୁ କେତେବେଳେ ପକ୍‌କା କରାଯିବ ? ସେ ଏହା କିପରି ଠିକ କରନ୍ତି ? ମୋ ମନରେ ଏତେ ପ୍ରଶ୍ନ ଉଠିଲା ଯେ, ମୁଁ ଅଡୁଆରେ ପଡ଼ିଗଲି । ରାସ୍ତାକୁ ଦେଖି ଡ଼ର ବି ଲାଗିଲା । ଲାଗିଲା ଯେମିତି ଏଇଟା

ଗୋଟିଏ ଭୂତ ବନିଯାଇଛି । ଯେତେବେଳେ ଯାଏଁ ମୁଁ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଦେଇପାରିବିନି, ସେ ଯାଏଁ ସେ ମତେ ଆଗକୁ ଯିବାକୁ ଦେବନି । ମୁଁ ଅଟକିଗଲି । ରାସ୍ତାରୁ ହଟିଯାଇ ଗୋଟିଏ ଗଛ ମୂଳରେ ବସିପଡ଼ିଲି । ସବୁ ପ୍ରଶ୍ନକୁ ନିଜ ଖାତାରେ ଲେଖି ପକାଇଲି । ଭାବିବାରେ ଲାଗିଲି, ଏହାର ଉତ୍ତର ମୁଁ କେଉଁଠୁ ପାଇପାରିବି ? ଏତିକିବେଳେ ସହରଆଡ଼କୁ ମୁହାଁଇଥିବା ବସ୍‌ଟିଏ ଦେଖାଗଲା । ମୁଁ ଦଉଡ଼ିଯାଇ ରାସ୍ତା ଉପରେ ପହଞ୍ଚିଲି । ଆଉ ବସ୍‌କୁ ହାତ ଦେଖାଇଲି । ବସ୍ ଅଟକିଗଲା । ମୁଁ ସେଥିରେ ଚଢ଼ିଗଲି । ମାତ୍ର ୨୦ ମିନିଟ୍‌ରେ ହିଁ ସହରରେ ପହଞ୍ଚିଗଲି ।

ସହରରେ ପହଞ୍ଚି ମନେପଡ଼ିଲା, ପି.ଡ଼ବ୍ଲ୍ୟୁ.ଡ଼ି.ବାଲା ହିଁ ରାସ୍ତା ବନାନ୍ତି । ତାଙ୍କୁ କାହିଁକି ନ ପଚାରିବି ? ସେଠାକୁ ଯାଇ ଜାଣିପାରିଲି ଯେ, ଜଣେ ସାହେବ ଅଛନ୍ତି, ଯିଏ ରାସ୍ତା ତିଆରି କାମ ବୁଝନ୍ତି । ମୁଁ ତାଙ୍କ କୋଠରୀକୁ ଗଲି । ସେ ମୋତେ ବସିବାକୁ କହିଲେ ଓ ପଚାରିଲେ- '' କୁଆଡ଼େ ଆସିଛ ? '' ମୁଁ ଟିକେ ଲାଜର ସହ କହିଲି - କଥା ତ କିଛି ନାହିଁ ।



ପ୍ରକୃତରେ ମୁଁ ରାସ୍ତା ବିଷୟରେ କିଛି ଜାଣିବାକୁ ଚାହେଁ । ତେଣୁ ଭାବିଲି ଯେ, ବୋଧେ ଆପଣ ମତେ ଏ ବିଷୟରେ କିଛି ବତାଇପାରିବେ । ସେ କହିଲେ - ପଚାର, ଯାହା ଜାଣିବାକୁ ଚାହୁଁଛ । ମୁଁ ମୋ ଖାତା ଖୋଲିଲି ଓ ପଚାରିବାକୁ ଆରମ୍ଭ କଲି - ରାସ୍ତା କାହିଁକି ବନାଯାଏ ଓ ଏହା କେତେ ପ୍ରକାରର ?

ସେ ଉତ୍ତର ଦେଲେ - ଯାତାୟାତ ପାଇଁ ତ ରାସ୍ତା ତିଆରି ହୁଏ । ବିଭିନ୍ନ କାରଣରୁ ଲୋକଙ୍କୁ ଗୋଟିଏ ଜାଗାରୁ ଆଉ ଏକ ଜାଗାକୁ ଯିବା ଆସିବା କରିବାକୁ ପଡ଼େ । କିଏ ଖେତ, ବଜାର, କାରଖାନା, ମନ୍ଦିରକୁ ଯାଏ ତ, କିଏ ଜଣେ ଆଉ ଜଣକୁ ଭେଟିବା ପାଇଁ ଯାଏ । ଦାନା, କନା ଓ ଦରକାରୀ ଜିନିଷ ପାଇଁ ବି ଗୋଟିଏ ଜାଗାରୁ ଆଉ ଏକ ଜାଗାକୁ ଯିବାକୁ ପଡ଼େ । ଏ ସବୁ ପାଇଁ ରାସ୍ତା ନିହାତି ଜରୁରୀ । ଗୋଟିଏ ସମାଜରେ ଯାତାୟାତ ଯେତିକି ବଢ଼ିଚାଲେ, ସେଠାରେ ରାସ୍ତାର ସଂଖ୍ୟା ବି ସେତିକି ବେଗରେ ବଢ଼େ ।

ରାସ୍ତାରେ ନାନା ରକମର ଯାନବାହନ ଦୌଡ଼େ - ଯେପରି ରେଳଗାଡ଼ି, ମୋଟର, ଟ୍ରକ ଓ ପାଦଚଲା ଲୋକ । ସମସ୍ତଙ୍କ ପାଇଁ ଅଲଗା ପ୍ରକାରର ରାସ୍ତା ଦରକାର ହୁଏ । ମଣିଷଙ୍କ ପାଇଁ ପାଦଚଲା ସରୁ ରାସ୍ତାଟିଏ ଯଥେଷ୍ଟ । ଶଗଡ଼ଗାଡ଼ି ପାଇଁ ମାଟି ରାସ୍ତାଟିଏ ଲୋଡ଼ା ହୁଏ । କିନ୍ତୁ ମଟର ଗାଡ଼ି ପାଇଁ ପକ୍କା ରାସ୍ତା ଲୋଡ଼ା ହୁଏ । ପାଦଚଲା ବାଟ ବା ଶଗଡ଼ ବାଟ ପାଇଁ କୌଣସି ବିଶେଷ ଜିନିଷ ବା ବେଶୀ ଧନ ଦରକାର ହୁଏ ନାହିଁ । ପକ୍କା ସଡ଼କ ପାଇଁ ପିଚୁ, କାଠ, ପଥର, ରୋଲର୍ ଓ ଲୋକ ବଳ ଦରକାର ହୁଏ । ଏହି ରାସ୍ତା ତିଆରିରେ ବେଶୀ ଖର୍ଚ୍ଚ ବି ହୁଏ ।

ମୁଁ ପଚାରିଲି, '' ଆଚ୍ଛା, ଯାତାୟାତ ବଢ଼ିଯାଏ କାହିଁକି ? ଏହା କାହାକୁ ବେଶୀ ଲୋଡ଼ା ହୁଏ ? ମୋ ବାପାଙ୍କ ବେଳରେ ଆମ ଗାଁରେ ନା ଗାଡ଼ି ଚାଲୁଥିଲା ନା ରାସ୍ତା ଥିଲା । ନା ତାଙ୍କୁ କେଉଁଠି ପହଞ୍ଚିବା ବା ପହଞ୍ଚାଇବାରେ ବ୍ୟସ୍ତତା ଥିଲା । ଆମ କଥା ଦେଖନ୍ତୁ - ଆମେ ତ ଗାଁରେ ରହୁଛୁ । ନିଜ ଜମିର ଦେଖା ଚାହାଁ କରୁଛୁ । କୁଆଡ଼େ ଏପଟ ସେପଟ ଯିବାକୁ ହେଲା ତ ପାଦରେ ଚାଲିଗଲୁ, କିଛି ଜିନିଷ ନେବାକୁ

ଅଛି ବା ଜଲଦି ଯିବାକୁ ଅଛି ତ ଆମ ବଳଦ ଗାଡ଼ିରେ ବସି ଆରାମରେ ଚାଲିଲୁ । ହଁ, ଆଜିକାଲି ଗାଡ଼ି ଚାଲୁଛି ତ କେବେ କେମିତି ସେଥିରେ ବସିପଡୁଛୁ । କିନ୍ତୁ ଆମର ତ କିଛି ଦରକାର ନାହିଁ । ଆପଣଙ୍କ କଥା ଯଦି ମାନିବା ଯେ ଆବଶ୍ୟକତା ବଢ଼ି ଯାଇଛି, ତା' ହେଲେ, ଆମ ଗାଁ ଭିତରେ ରାସ୍ତା କାହିଁକି ପକ୍କା ହୋଇନାହିଁ ? କେବଳ ସହର ଆଡ଼କୁ ଯାଇଥିବା ରାସ୍ତାଗୁଡ଼ିକ ହିଁ କାହିଁକି ପକ୍କା ହୋଇଛି ? ''

ସାହେବ ବିଚରା ମୋ କଥାରେ ଚିଡ଼ି ଯାଇଥିଲେ । ସେ କହିଲେ - ତୁମ ଗାଁରେ ତୁମପରିକା ଆହୁରି ଦୁଇ ଚାରିଟା ଫାଲ୍‌ତୁ ଲୋକ ଥିବେ - ଏଇଥିପାଇଁ ହିଁ ତୁମ ଗାଁ ରାସ୍ତା ପକ୍କା ହୋଇ ନ ଥିବ । ତୁମ ଗାଁ ରାସ୍ତା କାହିଁକି ପକ୍କା ହୋଇନି ଯଦି ଜାଣିବାକୁ ଚାହୁଁଛ, ତେବେ ଯାଅ କେଉଁ ଅର୍ଥନୀତିଜ୍ଞ କି ସମାଜବିଜ୍ଞାନୀଙ୍କୁ ପଚାରିବ । ମୁଁ କହିଲି - ହଉ ଆଜ୍ଞା, ଇତିହାସକାର ଓ ଇଞ୍ଜିନିୟରଙ୍କୁ ତ ଦେଖିଲି । ଏଥର ଯାଏଁ ଅର୍ଥନୀତିଜ୍ଞ ଆଉ ସମାଜବିଜ୍ଞାନୀଙ୍କ ପାଖକୁ ....

ଖୋଜି ଖୋଜି ମୁଁ ଗୋଟିଏ କଲେଜରେ ପହଞ୍ଚିଲି । ସେଠାରେ ଜଣେ ପ୍ରଫେସର ସାହେବଙ୍କୁ ଭେଟିଲି । ଇଞ୍ଜିନିୟର ବାବୁଙ୍କ ସହ ହୋଇଥିବା କଥା ବିଷୟରେ ତାଙ୍କୁ କହିଲି ଓ ବାକି ପ୍ରଶ୍ନ ପଚାରିଲି । ସେ ପୁଣି ଯାତାୟାତ, ସଡ଼କ ଓ ସମାଜ ବିଷୟରେ କେତେକ ମନଛୁଆଁ କଥା ବତେଇଲେ । ଯେଉଁ କଥା ସବୁ ମୋ ମୁଣ୍ଡରେ ରହିଗଲା, ତାକୁ ଏଠାରେ ଦୋହରାଇବାକୁ ଚେଷ୍ଟା କରୁଛି ।

ଯେ କୌଣସି ସ୍ଥାନର ସମାଜ ବ୍ୟବସ୍ଥାରେ ଯାତାୟାତ ଦରକାର ହୁଏ । କିନ୍ତୁ ସମାଜଟିର ଉତ୍ପାଦନ ପ୍ରଣାଳୀ, ବେପାର ଓ ସୁରକ୍ଷାର ଆବଶ୍ୟକତା ଉପରେ ଏହାର ପରିମାଣ ନିର୍ଭର କରେ । ଉଦାହରଣ ରୂପେ : ଜଙ୍ଗଲରେ ରହୁଥିବା ଆଦିବାସୀମାନଙ୍କୁ ଦେଖ ।

ଆମ ଅଞ୍ଚଳରେ ଦୁଇ ବା ଅଢ଼େଇ ବର୍ଷ ତଳେ ଗୋଣ୍ଡ ଆଦିବାସୀମାନେ ରହୁଥିଲେ । ଆଉ ଏହି ସାରା ଜାଗାଟି ଖାଲି ଜଙ୍ଗଲରେ ପୂରି ରହିଥିଲା । ତାଙ୍କ ପାଖରେ ନା କୌଣସି ଯାନବାହନ ଥିଲା ନା ଜଙ୍ଗଲରେ କେଉଁଠି ରାସ୍ତା ଥିଲା ।




କାରଣ ଆଦିବାସୀମାନଙ୍କର ମୁଖ୍ୟ କାମ ଥିଲା : ଶିକାର କରିବା, ଫଳମୂଳ ସଂଗ୍ରହ କରିବା, ଛେଳି, ମଇଁଷି ପାଳିବା । ଏମାନେ ଛୋଟ ଛୋଟ ଦଳରେ ବାଣ୍ଟି ହୋଇ ଜଙ୍ଗଲରେ ରହୁଥିଲେ । ଏମାନଙ୍କୁ ଅତି ବେଗରେ କୁଆଡ଼େ ଯିବା ଆସିବା କରିବାକୁ ପଡୁ ନ ଥିଲା ବା କୌଣସି ଭାରି ଜିନିଷକୁ ଗୋଟିଏ ଜାଗାରୁ ଆଉ ଏକ ଜାଗାକୁ ବୋହି ନେବାକୁ ପଡୁ ନ ଥିଲା । କୁଆଡ଼େ ଯିବାକୁ ହେଲେ ସେମାନେ ପାଦରେ ଚାଲି ଯାଉଥିଲେ ଓ ଜିନିଷକୁ କାନ୍ଧରେ ଲଦି ନେଉଥିଲେ ।

ହଁ, କେବେ କେମିତି ତାଙ୍କୁ ଅତି ଭାରି ଜିନିଷ ବୋହି ନେବାକୁ ପଡୁଥିଲା । କିନ୍ତୁ ଏଥିପାଇଁ ସମସ୍ତେ ମିଳିମିଶି କାନ୍ଧ ଲଗାଇ ଦେଉଥିଲେ । କିନ୍ତୁ ଏପରି ଘଟଣା ବହୁତ କମ୍ ଥିଲା । ତେଣୁ ଏହା ତାଙ୍କ ପାଇଁ ବୋଝ ନ ହୋଇ ମଉଜ ବନି ଯାଉଥିଲା । କୌଣସି ଜାଗାରେ ସ୍ଥାୟୀ ବସବାସ କରିବା ତାଙ୍କ ପାଇଁ ଜରୁରୀ ବା ସମ୍ଭବପର ନ ଥିଲା । ପୁଣି ଏହି ଦଳଗୁଡ଼ିକର କିଛି ଠିକ୍ ଠିକଣା ନ ଥିଲା । କିଛି ବର୍ଷ ପାଇଁ କେଉଁ



ଗୋଟିଏ ଜାଗାରେ ରହିଲେ, ପୁଣି ଆଉ ଗୋଟିଏ ଜାଗାକୁ ଚାଲିଲେ । ଶିକାର, ଫଳ, ଚେରମୂଳ ଆଦି ସବୁ କେବଳ ତ ଗୋଟିଏ ଜାଗାରେ ମିଳିବ ନାହିଁ । ପ୍ରଥମରେ , ତାଙ୍କ ଯାତାୟାତ ଏତେ ଲୋଡ଼ା ନ ଥିଲା । ପୁଣି ଦ୍ୱିତୀୟରେ, ସେମାନଙ୍କ ପାଖରେ ରାସ୍ତା ତିଆରି ପାଇଁ ଜିନିଷ ପତ୍ର ବି ନ ଥିଲା ।

କାଳକ୍ରମେ ବିଭିନ୍ନ କାରଣରୁ ଏହି ଲୋକମାନେ ସ୍ଥାୟୀ ଭାବେ ରହିବାକୁ ଆରମ୍ଭ କଲେ । ସାଲୁଙ୍କି ନଈକୂଳରେ ଉର୍ବରତା ଦେଖ୍ ଆଖପାଖ ଅନ୍ୟ ଲୋକ ବି ଏଠାରେ ଚାଷ କରି ରହିଗଲେ । ଧିରେ ଧିରେ ଜଙ୍ଗଲ କଟା ହେଲା ଓ ଚାଷ ବଢ଼ିବାରେ ଲାଗିଲା । ଲୋକ ସଂଖ୍ୟା ବଢ଼ିଲା । ଯେଉଁଠି ପ୍ରଥମେ ଛୋଟ ଛୋଟ ବସ୍ତିରେ ପଚାଶ - ଶହେ ଲୋକ ରହୁଥିଲେ, ଏବେ ସେଠାରେ ହଜାର ହଜାର ଲୋକ ରହିବା ଏକ ସାଧାରଣ କଥା ହୋଇଗଲା ।

ମୁଁ କହିଲି- ପ୍ରଫେସର ସାହେବ, ଏହା ସବୁ ତ ଠିକ୍ ହେଲେ, ଏହା ସହିତ ରାସ୍ତା ଓ ଯାତାୟାତର ସମ୍ପର୍କ କ'ଣ ? ତାଙ୍କୁ ବୋଧେ ଲାଗିଲା ଯେ, ଏ ଲୋକଟା ଏକନମ୍ବର ମୂର୍ଖ । ଅଧ୍ୟାପକ ଅଟକିଗଲେ । ପିଲାଟି ପ୍ରଶ୍ନ ପଚାରିଦେଲା ତ ତାଙ୍କର ରାଗ ଚଢ଼ିଗଲା । ସେ ଏଥର ଚଡ଼ା ସ୍ୱରରେ କହିଲେ - ଆରେ ଭାଇ, ଖେତରୁ ଶସ୍ୟ କ'ଣ ତୁମେ ନିଜ ମୁଣ୍ଡରେ ଲଦି କରି ନେବ ? ଫସଲ କାଟିବା ପରେ ବର୍ଷା, ତୋଫାନରୁ ବଞ୍ଚେଇବା ପାଇଁ ଜଲ୍‌ଦି ଗୋଦାମରେ ପହଞ୍ଚିବାକୁ ହେବ - ତା'ହେଲେ ବଳଦଗାଡ଼ି ଲୋଡ଼ା ହେବନି ? ଟିକିଏ ମନ ଦେଇ ଶୁଣ, ମୁଁ ସବୁ କଥା କ୍ରମରେ ବତେଇବି ।

ମୁଁ କହିଲି - ଆଜ୍ଞା ଆପଣ ଭଲ ଭାବେ ବୁଝାଉଛନ୍ତି ନିଶ୍ଚୟ; କିନ୍ତୁ ମୁଁ ଗାଁ ଲୋ!କ , ସନ୍ଧ୍ୟା ହେଲାଣି , ଗାଁକୁ ଫେରିଯିବି । ତେଣୁ ଟିକେ ସଂକ୍ଷେପରେ ବତେଇବେ ।

କିନ୍ତୁ ପ୍ରଫେସର ସାହେବଙ୍କୁ ମୋର ଘର ଯିବାରେ କି ଯା'ଆସେ ? ନିଜ ଢାଞ୍ଚାରେ ସେ କହି ଚାହିଲେ - ଦେଖ ଜମି ଚାଷ ପାଇଁ ଶଗଡ ଦରକାର । ଶଗଡ ତ ଆଉ ହିଡ ରାସ୍ତାରେ ଚାଲିପାରିବିନି । ଶଗଡ଼ ପାଇଁ ଓସାରିଆ ବାଟ ଲୋଡ଼ା ହୁଏ । ଏଥିପାଇଁ ଗାଁରୁ ଖେତ ଜମିଯାଏ ଓ ସାହି ମଝିରେ ରାସ୍ତା ବନା ଗଲା । ଏହାର ଅର୍ଥ ନୁହେଁ ଯେ, ଯେ ଯୁଆଡ଼େ ଯିବେ, ସେ ଶଗଡ଼ରେହିଁ ବସିଯିବେ । ଅଳ୍ପ ଦୂର ଜାଗାକୁ ଯଦି କମ୍ ଓଜନ ଜିନିଷ ନେଇ ଯିବାକୁ ହୁଏ, ତେବେ ଲୋକ ହିଡ଼ ବାଟରେ ହିଁ ଚାଲି ଯାଆନ୍ତି ।

ମୁଁ କହିଲି - ହଁ, ଆଉ କ'ଣ ସମସ୍ତଙ୍କ ପାଖରେ ଶଗଡ଼ ଅଛି ? ପ୍ରଫେସର ସାହେବ ମୋର କଥାକୁ ଜମା ଧ୍ୟାନ ନ ଦେଇ ନିଜ ଭାଷଣ ଜାରି ରଖିଲେ - ଏଥିପାଇଁ ହିଡ଼ ରାସ୍ତାଗୁଡ଼ିକ ଆଜି ବି ରହିଛି । କିନ୍ତୁ ଏହା ହେଲା ଗାଁ ଭିତରର କଥା । ନିଜ ନିଜ ମଧ୍ୟରେ ସମ୍ପର୍କ ରଖି ବିକାଶ କରିବା ପାଇଁ ବିଭିନ୍ନ ଗାଁ ଓ ସହର ମଧ୍ୟରେ ରାସ୍ତା ତିଆରି ହୁଏ ।

ଚାଷବାସର ଗୋଟିଏ ମହତ୍ତ୍ୱପୂର୍ଣ୍ଣ ପରିଣାମ କ'ଣ ଜାଣିଛ ? ଅତିରିକ୍ତ ଉତ୍ପାଦନ । ଗୋଟିଏ ଗୋଟିଏ ଗାଁରେ ଏତେ ଖାଦ୍ୟ ଉତ୍ପନ୍ନ ହୁଏ ଯେ, ସେ ଗାଁ ଲୋକେ ଏ ସବୁ ଖାଇପାରନ୍ତି ନାହିଁ । ବଳିଥିବା ଖାଦ୍ୟଶସ୍ୟକୁ ବିକି ସେମାନେ ଅନ୍ୟ ଦରକାରୀ ଜିନିଷ ଯଥା - ଲୁଗା, ଲୁଣ, ଲୁହା, ତମ୍ବା ଆଦି କିଣନ୍ତି ।

ଏହି ଜିନିଷ ଅଲଗା ଅଲଗା ଜାଗାରେ ବନା ହୁଏ । ବେପାରୀମାନେ ଏହାକୁ କିଣାବିକା ପାଇଁ ଗୋଟିଏ ଜାଗାରୁ ଆଉ ଏକ ଜାଗାକୁ ନେଇ ଯାଆନ୍ତି । ଏଥିପାଇଁ ସେମାନଙ୍କୁ ଜିନିଷବୁହା ପଶୁ, ବଳଦଗାଡ଼ି ଆଦି ଦରକାର ହୁଏ । ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ସାରା ଦେଶରେ ମାଟି ରାସ୍ତା ବା ଶଗଡ଼ ପାଇଁ ରାସ୍ତା ଜାଲ ପରି ବିଛେଇ ହୋଇଯାଇଛି ।



ଏହି ରାସ୍ତା ବନାଯିବାର ଦ୍ୱିତୀୟ କାରଣ ଥିଲା - ସୁରକ୍ଷା । ଗାଁରେ ଯେତେବେଳେ ଅତିରିକ୍ତ ଉତ୍ପାଦନ ବା ଧନ ସମ୍ପତ୍ତି ଠୁଳ ହୋଇଯାଉଥିଲା, ତାହାରି ସୁରକ୍ଷା ପାଇଁ ଅଲଗା ଅଲଗା ଗାଁ ମଧ୍ୟରେ ସମ୍ପର୍କ ରଖିବା ଆରମ୍ଭ ହେଉଥିଲା ।

ଧିରେ ଧିରେ ରାଜା ମହାରାଜାମାନେ ଏହି କାମର ଦାୟିତ୍ୱ ନେଲେ ଓ ଗାଁ ସୁରକ୍ଷା ବଦଳରେ ଲୋକଙ୍କଠୁ କର ଅସୁଲ କରିବାକୁ ଆରମ୍ଭ କଲେ । କର ଅସୁଲ କରିବା ଓ ସୁରକ୍ଷା ବ୍ୟବସ୍ଥା କରିବା ପାଇଁ ରାସ୍ତା ଦରକାର ଥିଲା ।

କ୍ରମେ ରାଜ୍ୟଗୁଡ଼ିକ ବଡ଼ ହେବାରେ ଲାଗିଲା । ଏଥର ସୈନ୍ୟଙ୍କୁ ରଖିବା ପାଇଁ ଓ ଶାସନ ଚଳାଇବା ପାଇଁ ନୂଆ ନୂଆ ବସ୍ତି ଗଢ଼ି ଉଠିଲା। ଏହି ବସ୍ତି ଗୁଡ଼ିକରେ ହାଟ ବସିଲା ଯେଉଁଠି ଗାଁର ଖାଦ୍ୟ ଶସ୍ୟ ଆଦି ବିକାଗଲା । ଆଉ ପାଖରେ ସହରରେ ତିଆରି ଜିନିଷ ବି ଗାଁରେ ବିକ୍ରି ପାଇଁ ଅଣାଗଲା ।

ଏପରି ଭାବରେ ଛୋଟ ଛୋଟ ସହର ସବୁ ବନିବାରେ ଲାଗିଲା । ସହରରେ ଶସ୍ୟ ଉତ୍ପାଦନ ହେଉ ନ ଥିଲା । ସହର ଲୋକେ ତ ଆଉ ଧାତୁ, କନା ଆଦି ଖାଇ ଜିଇଁ ପାରିବେନି । ଗାଁରୁ ହିଁ ସେମାନଙ୍କ ପାଇଁ ଶସ୍ୟ ପରିବା ଆଦି ଆସିଲା । ଏ ପ୍ରକାରେ ସେମାନଙ୍କ ଜୀବନ ଗାଁ ସହ ଯୋଡ଼ା ହୋଇ ରହିଲା । ଏହି ସମ୍ପର୍କ ଯାତାୟାତ ମାଧ୍ୟମରେ ହିଁ ଜାରି ରହିପାରେ ।

ତେଣୁ ସହର ପାଖର ଗାଁଗୁଡ଼ିକୁ ରାସ୍ତା ତିଆରି ହେଲା । ଏଥିରେ ଖାଲି ଯେ ସହରର ଲାଭ ହେଲା ତାହା ନୁହେଁ, ଗାଁର ବି ହେଲା । ଗାଁରୁ ଆସି ଲୋକମାନେ ସହରରେ ସେମାନଙ୍କ ଶସ୍ୟ, ତୁଳା ଆଦି ବିକି ନିଜ ପାଇଁ ଦରକାର ଅନ୍ୟ ଜିନିଷଗୁଡ଼ିକ କିଣିପାରିଲେ । ଏପରି ଭାବରେ ତାଙ୍କ ଜୀବନଧାରା ବଦଳିଲା ଓ ସହରୀ କଳା-ସଭ୍ୟତା ଗାଁକୁ ପ୍ରଭାବିତ କରିବାରେ ଲାଗିଲା ।

ବେପାର ତ ଦରକାର ଥିଲା କିନ୍ତୁ ରାଜା, ମହାରାଜା ଓ ସୁଲତାନାମାନେ ନିଜ ରାଜ୍ୟର ସୁରକ୍ଷା ପାଇଁ ଓ ସୈନ୍ୟମାନଙ୍କୁ ଏପଟ ସେପଟ ନେବା ଆଣିବାରେ ସୁବିଧା ପାଇଁ ବି ରାସ୍ତା ତିଆରି କଲେ । ପୂର୍ବରୁ ପଶ୍ଚିମ ଯାଏଁ, ଉତ୍ତରରୁ ଦକ୍ଷିଣ ଯାଏଁ ଏହି ରାଜାମାନେ ରାସ୍ତା ସବୁ ବନାଇଲେ । ସେହିମାନଙ୍କ ବିଷୟରେ ଆମେ ଇତିହାସ ବହିରେ ପଢୁଛେ ।

ସହରର ଭିତରେ ମଧ୍ୟ ଯାତାୟାତ ଦରକାର ହୁଏ । ସହରର ଜୀବନଧାରା ଏହି ଯାତାୟାତ ଉପରେ ହିଁ ନିର୍ଭର କରେ । ଏହି ପରିପ୍ରେକ୍ଷୀରେ ଶଗଡ଼ି ବାଟ ଯଥେଷ୍ଟ ନୁହେଁ । ଶଗଡ଼ର ଚକ ଯୋଗୁଁ ଚାଲିବା ବାଟଗୁଡ଼ିକ ଭାଙ୍ଗି ଧୂଳିଆ ହୋଇଯାଏ ଓ ବର୍ଷା ହେଲେ କାଦୁଆ ହୋଇଯାଏ ।

କାଦୁଅରେ ଗାଡ଼ି ଚଳାଇବା ବଡ଼ କଠିନ କାମ । ଏଥିପାଇଁ ଅଧିକାଂଶ ଜାଗାରେ ବର୍ଷା ସମୟରେ ଯାତାୟାତ ବନ୍ଦ ହୋଇଯାଏ । ଏଥିରୁ ରକ୍ଷା ପାଇବା ପାଇଁ ସହରରେ ଇଟା ପଥରର ସଡ଼କ ବନାଗଲା । ଏହି ସଡ଼କଗୁଡ଼ିକ ବେଶ୍ ସମତଳ ଓ ମଜବୁତ ହୁଏ । ଆବୁଡ଼ା ଖାବୁଡ଼ା ହୁଏ ନାହିଁ ।

ଏଥର ଆସିଲେ ଇଂରେଜମାନେ । ଏମାନେ ହିଁ ପ୍ରଥମେ ପକ୍କା ସଡ଼କ ବନାଇଲେ । ମୁଁ ପଚାରିଲି - ଇଂରେଜମାନେ କ'ଣ ଆମକୁ ଭଲ ପାଉଥିଲେ ? ଯେଉଁଥିପାଇଁ ସେମାନେ ଆମପାଇଁ ପକ୍କା ସଡ଼କ ବନେଇଦେଲେ ? ଏଥିରେ କିଛି ଚାଲ୍ ଥିବ ନିଶ୍ଚୟ ।



ପ୍ରଫେସର ବଡେଇଲେ - ଚାଲ୍ ତ ନିଶ୍ଚୟ ଥିଲା । ସେମାନେ ତ ଆମକୁ ଶାସନ କରି ଆମଠୁ ଲୁଟିବାକୁ ଆସିଥିଲେ । ଆମ ଦେଶ ଲୋକେ ବି ସେମାନଙ୍କ ବିରୁଦ୍ଧରେ ଖୁବ୍ ଲଢ଼ିଲେ । କେବେ ଜଙ୍ଗଲରେ ବିଦ୍ରୋହ ତ କେବେ ସମଳତରେ ହାତା ହାତି ହେଲା । କେବେ କାବୁଲରେ, କେବେ ମହାରାଷ୍ଟ୍ରରେ, କେବେ ଓଡିଶାରେ କେବେ ମାଡ୍ରାସରେ, କେବେ ଆନ୍ଧ୍ର ପ୍ରଦେଶରେ ବିରୋଧ ଚାଲୁ ରହିଲା ।

ପୂରା ଦେଶକୁ କାବୁ କରିବା ପାଇଁ ତାଙ୍କର ସୈନ୍ୟମାନଙ୍କୁ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଯିବାକୁ ପଡୁଥିଲା । ଭଲ ରାସ୍ତା ବିନା ଏହା ଅସମ୍ଭବ ଥିଲା । ଏଥିପାଇଁ ବିଭିନ୍ନ ସହରରେ, ବିଶେଷ କରି ସୈନ୍ୟ ଛାଉଣୀ ଗୁଡ଼ିକ ମଧ୍ୟରେ, ଭଲ ସଡ଼କ ବନାଗଲା ।

ଦ୍ୱିତୀୟ୍ କଥା ହେଉଛି, ୟୁରୋପରେ ମଟର ଗାଡ଼ି ତିଆରି ହୋଇଥାଏ ଶଗଡ଼ ଗାଡ଼ି ତୁଳନାରେ ମୋଟର ଗାଡ଼ି ବେଶ୍ ଅଧିକ ବେଗରେ ଯାଇ ପାରୁଥିଲା ସେଗୁଡ଼ିକ ପାଇଁ ଇଟା, ପଥରବାଲା, ସଡ଼କ କାମ ଦେଲାନି । ଏଣୁ ନୂଆ ନୂଅ କିସମର ରାସ୍ତା ବନାଗଲା । ଆବୁଡ଼ା ଖାବୁଡ଼ା ନ ହୋଇ ସେଗୁଡ଼ିକ ସମତଳ ହେଲା ଏହି ରାସ୍ତାଗୁଡ଼ିକ ବର୍ଷା ତୋଫାନରେ ବି କମ୍ ଖରାପ ହେଲା ।

ତେବେ ଇଂରେଜମାନେ କେବଳ ଶାସନ କରିବାକୁ ଆସି ନ ଥିଲେ । ତାଙ୍କଟ ପଇସା ବି ଲୋଡ଼ା ଥିଲା । ଏକରେ ସେମାନେ ଇଂଲଣ୍ଡ ତିଆରି ଜିନିଷଗୁଡ଼ିକୁ ଭାରତର ଗାଁ ଗାଁରେ ବିକିବାକୁ ଚାହୁଁଥିଲେ । ଏହା ସାଙ୍ଗକୁ ଭାରତର ଗାଁ ଗାଁରୁ ତୁଳା, ଚା, ତମାଖୁ, ଶସ୍ୟ ଆଦି କଞ୍ଚା ମାଲ ବି ରପ୍ତାନୀ କରିବା ଲକ୍ଷ୍ୟ ଥିଲା ଏସବୁ ପାଇଁ ଯାତାୟାତ କରିବା ବହୁତ ଜରୁରୀ ଥିଲା । ତେଣୁ ଯେଉଁଠି ଜିନିଷ ପତ୍ର କିଣାବିକାର ଆବଶ୍ୟକତା ଥିଲା, ସେହି ଅଞ୍ଚଳକୁ ରାସ୍ତାମାନ ବନାଗଲା ।

ମୁଁ କହିଲି - ମତେ କିନ୍ତୁ ଏମିତିକା ଲୁଟିବା ଲୋକେ ଭଲ ଲାଗୁଛନ୍ତି । ସେମାନେ କିଛି ତ ଲାଭଜନକ କାମ କଲେ । ହେଲେ ଆପଣ ଏସବୁ ପୁରୁଣା କଥା ଛାଡ଼ନ୍ତୁ ଓ ଏଇଅ ବତାନ୍ତୁ, ଆଜିକାଲି ଯାତାୟାତ କାହିଁକି ବଢ଼ି ଯାଇଛି - ଖାସ୍ କରି ଆମ ଇଲାକାରେ ?




ସେ ମୋତେ ନିରେଖି ଦେଖିଲେ ଓ ପଚାରିଲେ- ତୁମେ ଯେଉଁ କାମିଜଟି ପିନ୍ଧିଛ, ସେଇଟା କେଉଁଠି ବନାଯାଇଛି ? ମୁଁ ଭାବିବାରେ ଲାଗିଲି, ମୋର କାମିଜ ସହିତ ଯାତାୟାତର ସମ୍ବନ୍ଧ କ'ଣ ? ମୁଁ ଉତ୍ତର ଦେଲି - କେଉଁଠି ବନିଛି କିଏ ଜାଣେ ? ମୁଁ ତ ଗାଁରେ ମଙ୍ଗଳବାର ହାଟରେ କିଣିଥିଲି । ସେ ପଚାଚିଲେ - ଏଇଟା କ'ଣ ତୁମର ବା ଆଉ କେଉଁ ଗାଁରେ ବନା ହୋଇଥିବ ?

ମୁଁ କହିଲି - ଗାଁରେ ଆଜିକାଲି ବୁଣେଇ କେଉଁଠି ହେଉଛି ? ଆଉ ଏମିତିକା କପଡ଼ା ? ଆମେ ଶୁଣିଛୁ ଯେ, ମୋ ଜେଜେଙ୍କ ବେଳେ ଜଣେ ତନ୍ତୀ ଥିଲେ ଯିଏ ସମସ୍ତଙ୍କ ଲୁଗା ବୁଣୁଥିଲେ । ସେ ମରିଯିବା ପରେ ଗାଁରେ ଲୁଗା ବୁଣିବା ବନ୍ଦ ହୋଇଗଲା । ସେ କହିଲେ- ଅନୁମାନ କରି ପାରିବ, ସେହି ତନ୍ତୀ ଗୋଟିଏ ଦିନରେ କେତେ ଲୁଗା ବୁଣି ପାରୁଥିଲେ ? ମୁଁ କହିଲି - ହବ ଅଧା ମିଟର କି ମିଟରଟିଏ ।

ପ୍ରଫେସର କହିଲେ - ଧର , ତୁମ କାମିଜର କନା ସେହି ଲୁଗା କଳରେ ବୁଣାଯାଇଥିଲା । ସେ ଦୂରରେ ଥିବା ଗୋଟିଏ ଚିମିନି ଆଡ଼କୁ ଆଙ୍ଗୁଠି ଦେଖେଇଲେ । ସେଠାରେ ଗୋଟିଏ ଦିନରେ ଶହେ ମିଟର ଲୁଗା ବୁଣାଯାଏ - ସେହି ଗାଁରେ ପ୍ରତିଦିନ ହଜାରେ କିଲୋ କପା ଲୋଡ଼ା ହୁଏ । ଦୂର ଦୂର ଗାଁରୁ କପା ଏହି ମିଲ୍‌କୁ ଅଣାଯାଏ । କିନ୍ତୁ କପା ନ ଆଣିଲେ ମିଲ୍ ବନ୍ଦ ହୋଇଯାଏ । ସବୁ ଲୋକ ବେକାର ହୋଇଯିବେ । ଏଥିପାଇଁ ଗାଁରୁ ସହର ଯାଏଁ ରାସ୍ତା ଦରକାର ଅଟେ ।

ଦ୍ୱିତୀୟ କଥା ହେଉଛି : ଏହି ଲୁଗାକଳରେ ଏକ ହଜାର କାରିଗର କାମ କରନ୍ତି । ସେମାନେ ଅଧିକାଂଶ ଏହି ସହରରେ ରହନ୍ତି । ସେମାନେ ଖାଇବା ପାଇଁ ଶସ୍ୟ ଇତ୍ୟାଦି କେଉଁଠୁ ପାଇବେ ? ଗାଁରୁ ହିଁ ତ ଆସିବ । ତୃତୀୟ କଥା ହେଉଛି ଏପରି କେତେ କାରିଗର ଅଛନ୍ତି, ଯେଉଁମାନେ ଆମ ପାଖ ଗାଁରୁ କାମ କରିବାକୁ ପ୍ରତିଦିନ ଆସନ୍ତି । ଯଦି ଭଲ ରାସ୍ତା ଓ ଗାଡ଼ି ନ ଥାନ୍ତା, ତେବେ ସେମାନେ ଠିକ୍ ସମୟରେ ଆସି ପାରି ନଥାନ୍ତେ କି ଘରେ ପହଞ୍ଚି ପାରି ନଥାନ୍ତେ ।

ଚତୁର୍ଥ କଥା ହେଉଛି - ଲୁଗା କଳରେ ଯେଉଁ ଶହ ଶହ ମିଟର ଲୁଗା ବୁଣାଯାଏ, ତାହାକୁ ଗୋଦାମରେ ପହଞ୍ଚାଇବାକୁ ବି ପଡ଼େ - ଏଥିପାଇଁ ବି ରାସ୍ତା ଓ ଯାତାୟାତ ବ୍ୟବସ୍ଥା ଜରୁରୀ ଅଟେ । ବେଗରେ ଚାଲିବା ଭାରି ଯାନବାହାନ ମାଟି ରାସ୍ତାରେ ଚାଲିପାରିବନି । ତେଣୁ ପକ୍କା ରାସ୍ତା ଦରକାର । ପୁଣି ମାଟି ରାସ୍ତା ବର୍ଷା ଦିନେ ଖରାପ ହୋଇଯାଏ ଓ ଧୋଇ ହୋଇଯାଏ । ଲୁଗାକଳରେ ଯନ୍ତ୍ରଗୁଡ଼ିକ ଲଗାତାର ଜୋରରେ ଚାଲେ । ଏଗୁଡ଼ିକ ଯେତେ ବେଗରେ ଚାଲେ, ଯାନବାହନଗୁଡ଼ିକୁ ବି ସେତିକି ବେଗରେ ଚଲାଇବାକୁ ପଡ଼େ ।

ଇଏ ତ ହେଲା- କେବଳ ଲୁଗା ବ୍ୟବସାୟର କଥା । ଏବେ ତ ଅନେକ ବ୍ୟବସାୟ ହେଉଛି - କେଉଁଠି ଚିନିକଳ; କେଉଁଠି ଇସ୍ପାତ କାରଖାନା । ଏ ସବୁ ପାଇଁ ଭଲ ଯାତାୟାତ ବ୍ୟବସ୍ଥା ବହୁତ ଜରୁରୀ । ଯେତେଯେତେ କାରଖାନା ବଢ଼ି ଚାଲୁଛି, ଭାରି ଯାନବାହନ ସଂଖ୍ୟା ବି ସେତେ ବଢୁଛି ଓ ରାସ୍ତାଗୁଡ଼ିକ ଜାଲ ପରି ଖେଳାଇ ହୋଇଯାଉଛି ।

ମତେ ଏଇ କଥାଟା ବି ଠିକ୍ ଲାଗିଲା । ମୁଁ ତାଙ୍କୁ ଧନ୍ୟବାଦ ଜଣାଇଲି ଓ ଗାଁକୁ ବାହାରିଲି । ସନ୍ଧ୍ୟା ହୋଇ ଆସୁଥାଏ । ବସ୍‌ଷ୍ଟାଣ୍ଡରେ ପହଞ୍ଚିଲି । ହେଲେ, ମୋ ଗାଁକୁ ଯାଉଥିବା ଶେଷ ଗାଡ଼ିଟି ଛାଡ଼ି ଦେଇଥାଏ । ପ୍ରଫେସର ସାହେବଙ୍କ କୃପାରୁ ଆଜି ମତେ ଚାଲି ଚାଲି ହିଁ ଗାଁକୁ ଫେରିବାକୁ ହେବ । ଚାଲୁ ଚାଲୁ ମୁଁ ରାସ୍ତା ବିଷୟରେ ହିଁ ଭାବୁଥାଏ ।



ସହରରୁ ଆମ ଗାଁ ଯାଏଁ ରାସ୍ତା ବନିଗଲା । କିନ୍ତୁ ଗୋଟିଏ ଗାଁରୁ ଆର ଗାଁ ଯାଏଁ କାହିଁକି ବନିଲାନି ? ଏହି ରାସ୍ତାଗୁଡ଼ିକ କାହିଁକି ପକ୍କା ହେଲାନି ? ମୁଁ ଯେବେ ମୋ ଭଉଣୀକୁ ଭେଟିବାକୁ ଯାଉଛି, ତେବେ ଶଗଡ଼ରେ ଯିବାକୁ ହେଉଛି । ଆମ ଗାଁ ଓ ତାଙ୍କ ଗାଁ ଭିତରେ କି ଫରକ ଅଛି ?

ବେଶ୍ ସମୟ ଯାଏଁ ତୁଳନା କରି ମୁଁ ଏହି ସିଦ୍ଧାନ୍ତରେ ପହଞ୍ଚିଲି ଯେ, ଆମ ଗାଁରେ ଗୋଦାମ ଅଛି ଓ ତାଙ୍କ ଗାଁରେ ନାହିଁ । ଯେପରି ପ୍ରଫେସର ସାହେବ କହିଥିଲେ, ଶସ୍ୟ , କପା, ଆଦି ଲୁଗାକଳରେ ଜଲଦି ପହଞ୍ଚାଇବା ବହୁତ ଜରୁରୀ ।



ମୁଁ ଭାବିଲି - ରାସ୍ତା କ'ଣ କାରଖାନାକୁ ହିଁ ଲୋଡ଼ା ହୁଏ ? ଆଉ ଗାଁ ବାଲାଙ୍କୁ ଲୋଡା ହୁଏନି ? ନିର୍ବାଚନ ବେଳେ ନେତାମାନେ ବଡ଼ ବଡ଼ କଥା କହନ୍ତି - ବାସ୍ ୬ ମାସରେ ରାସ୍ତା ତିଆରି ହୋଇଯିବ । ପୋଲ ତିଆରି ହୋଇଯିବ । କିନ୍ତୁ କିଛି ବି ହୁଏ ନାହିଁ ।

କିନ୍ତୁ ଏଇ ରାସ୍ତା ବନିବାରୁ ଗାଁର ଅନେକ ଲାଭ ବି ହୋଇଛି । କେତେ ଲୋକଙ୍କ ଜୀବନ ଏଇ ରାସ୍ତା ସହ ଯୋଡ଼ା ହୋଇଛି । ଆଗ ଗାଁରେ ଖାଲି ଖାଦ୍ୟଶସ୍ୟ ହିଁ ଉତ୍ପନ୍ନ ହେଉଥିଲା; କିନ୍ତୁ ଏବେ ଗାଁରେ କପା, ଆଖୁ, ପରିବା ଆଦି କେତେ ଜିନିଷ ଚାଷ କରାଗଲାଣି । ଏ ସବୁକୁ ନେଇ ସହରରେ ବିକା ହେଉଛି । କିନ୍ତୁ କିଏ ଏହାର ସୁବିଧା ପାଉଛନ୍ତି ?

ଗରୀବ ଚାଷୀର ଏତେ ପଇସା କାହିଁ ଯେ ସେ ଅଧିକ ଫସଲ କରି ବିକିପାରିବ ? ଯାହା ଅମଳ କରୁଛି, ସବୁ ତା' ପରିବାରକୁ ନିଅଣ୍ଟ । କେବଳ ଧନୀ ଚାଷୀମାନେ ଲାଭ ପାଉଛନ୍ତି । ତାଙ୍କର ମୂଳଧନ ଅଛି । ତେଣୁ ଅଧିକ ପୁଞ୍ଜି ଲଗାଇ

ସେମାନେ ଆଖୁ, କପା, ଆଦି ଦାମୀ ଫସଲ କରି ପାରୁଛନ୍ତି ଓ ସେତିକି ଲାଭ ବି ପାଉଛନ୍ତି । କିନ୍ତୁ ଗରିବମାନେ ବି ଏହି ରାସ୍ତା ଯୋଗୁଁ ଅନେକ ସୁବିଧା ପାଇପାରୁଛନ୍ତି ।

ଆଜିକାଲି ପ୍ରତିଦିନ କିଛି ଲୋକ ସହରକୁ ଯାଉଛନ୍ତି । ସହରର ବିଭିନ୍ନ କଳ, କାରଖାନାରେ କାମ କରୁଛନ୍ତି ବା ରାସ୍ତା, ଘରଦ୍ୱାର ଆଦି ବନାଉଛନ୍ତି । ସହରର ଶାରୀରିକ କାମତକ ଗାଁ ଲୋକଙ୍କ ବିନା ତ ଅସମ୍ଭବ । ତେଣୁ ପାଖ ଗାଁଗୁଡ଼ିକରୁ ଅନେକ ଲୋକ ସହରରେ କାମ କରୁଛନ୍ତି ।

ରାସ୍ତା ଏ ଦିଗରେ ଯଥେଷ୍ଟ ସାହାଯ୍ୟ କରୁଛି । ଆଜିକାଲି ସହର ଜିନିଷସବୁ ବି ଗାଁ ଗହଳିରେ ମିଳିଲାଣି । ମୁଁ ଭାବିଲି, ଦିନେ ମୁଁ ରାସ୍ତାକଡ଼ରେ ଦିନସାରା ବସି ହିସାବ ରଖିବି ଏହି ରାସ୍ତାଟିରେ କିଏ, କେଉଁ କାମରେ ଯା' ଆସ କରୁଛନ୍ତି ? ଏଥିରୁ ଅନେକ କଥା ଜଣାପଡ଼ିବ ।



ଏମିତି ଭାବି ଭାବି ମୁଁ ଚାଲିଥାଏ । ଆଗରେ ବଉଦ ରାଜାଙ୍କ ଦୁର୍ଗଟି ଦେଖାଗଲା । ଏହି ପୁରୁଣା ଦୁର୍ଗଟି ଆମ ଗାଁଠୁ ଏକ କିଲୋମିଟର ଦୂର । ମୁଁ ଖୁସି ହୋଇଗଲି, ଆଉ ଅଧାଘଣ୍ଟା ଭିତରେ ମୁଁ ଘରେ ପହଞ୍ଚିଯିବି । ଗଡ଼ଖାଇ ପାଖରେ ଚାଲୁଚାଲୁ ଦେଖିଲି, ଗୋଟିଏ ପୁରୁଣା ରାସ୍ତା ଦୁର୍ଗ ଦୁଆରରୁ ବାହାରିଛି । ଏବେ ତ ଏଇଟା ଅନେକ ପରିମାଣରେ ଭାଙ୍ଗିରୁଜି ଯାଇଥାଏ ।

ମୋ ମନକୁ ଭାବନାଟିଏ ଆସିଲା - କିଛି ବର୍ଷ ପରେ ଆମ ଗାଁ - ସହର ପୁରୁଣା ହୋଇଯିବ । ପୁଣି ନୂଆଁ ନୂଆଁ କାମରେ ଲୋକ ଆଉ କୁଆଡ଼େ ମୁହାଁଇବେ । କ୍ରମେ ଏଗୁଡ଼ିକ ମଧ୍ୟ ଏହି ପୁରୁଣା ଦୁର୍ଗଟି ପରି ଅଚଳ, ଅବ୍ୟବହୃତ ହୋଇ ପଡ଼ିରହିବ । ଇତିହାସକାରମାନେ ଖୋଜିବାରେ ଲାଗି ପଡ଼ିବେ । ବୋଧେ ସେମାନେ ବି ଆମ ରାସ୍ତା ବିଷୟରେ ଲେଖିବେ - " ବିଂଶ ଶତାବ୍ଦୀରେ ସରକାର ପକ୍କା ରାସ୍ତା ବନାଇଥିଲେ । "

ଆମେ ଯେପରି ଆଜିର ଇତିହାସ ପଢ଼ି ଭାବୁଛେ ଅମୁକ ରାଜା, ବା ସୁଲତାନ୍ କେତେ ଜନହିତକର କାମ କରିଥିଲେ, ସେପରି ପାଠକମାନେ ଭୁଲ ଧାରଣା ପାଇବେ । କିନ୍ତୁ ଏହା କେତେ ଅଡୁଆ ଲାଗୁଛି ! ଏହି ରାସ୍ତା ତିଆରି ପଛରେ ଯେଉଁ ଆର୍ଥିକ, ସାମାଜିକ ଓ ରାଜନୈତିକ ଅଭିସନ୍ଧି ରହିଛି, ତାହାକୁ ଏହି ଇତିହାସକାରମାନେ ଛୁଇଁ ପାରିବେ ନାହିଁ । ବୋଧ ହୁଏ ସମ୍ରାଟ ଅଶୋକଙ୍କ ରାସ୍ତାଗୁଡ଼ିକର ବି ଏମିତିକା ସେତେବେଳର ପୂରା ସମାଜ ଓ ଅର୍ଥବ୍ୟବସ୍ଥା ସହ ନିଶ୍ଚୟ ସମ୍ପର୍କ ଥିବ ।

ଅଶୋକଙ୍କ ରାସ୍ତାଗୁଡ଼ିକ କେଉଁ ପ୍ରକାରର ଥିଲା ? ସେହି ସମୟରେ କେଉଁ ପ୍ରକାରର ଯାନବାହନ ଥିଲା ? ଏହି ରାସ୍ତାଗୁଡ଼ିକୁ ଅଶୋକ କେଉଁ ଠାରୁ କେଉଁ ଯାଏଁ ବନାଇଥିଲେ ? ସେତେବେଳର ସମାଜରେ ଯାତାୟାତ ଆବଶ୍ୟକତା କେତେ ଦୂର ଯାଏଁ ବଢ଼ିଥିଲା ? ସେତେବେଳେ ଭାରତସାରା କ'ଣ କୃଷିଭିତ୍ତିକ ସମାଜ ତେରେଇ ଯାଇଥିଲା ? ପ୍ରଫେସର ସାହେବ କହୁଥିଲେ ଯେ, ଦୁଇଶହ ବର୍ଷ ଆଗରୁ



ଆମ ଜାଗାରେ ଜଙ୍ଗଲ ଥିଲା । ଏଠାରେ ଗଣ୍ଡୋ ଆଦିବାସୀମାନେ ରହୁଥିଲେ । ଅଶୋକଙ୍କ ବେଳେ ବି କ'ଣ ଏହି ଜାଗାର ଅବସ୍ଥା ଏପରି ଥିଲା ? କେଉଁ କେଉଁ ଜାଗାରେ ଚାଷବାସ କରାଯାଉଥିଲା ? ଏପରି ଏକ ସମୟରେ ଅଶୋକ କାହିଁକି ଏପରିକା ରାସ୍ତା ସବୁ ବନାଇଥିଲେ ? କିଏ କହିପାରିବ ? ଅଶୋକ ଏହି ଜାଗାଗୁଡ଼ିକରେ ରାସ୍ତା ବନାଇଥିଲେ ନା ଜାଗାଗୁଡ଼ିକ ମଧ୍ୟରେ ଯୋଗାଯୋଗ, ସମ୍ପର୍କ ଓ ବିକାଶ ପାଇଁ ରାସ୍ତା ବନାଇଥିଲେ ? ବେପାରକୁ ଆଖି ଆଗରେ ରଖି ସେ ଏପରି ରାସ୍ତା ବନାଇଥିଲେ ନା' ନିଜ ସାମ୍ରାଜ୍ୟର ସୁରକ୍ଷା ପାଇଁ ସେନା ଛାଉଣୀଗୁଡ଼ିକ ମଧ୍ୟରେ ରାସ୍ତା ଯୋଡ଼ିଥିଲେ ?

ଏହା ଦ୍ୱାରା ଗାଁ ଓ ସହରଗୁଡ଼ିକରେ କ'ଣ ପରିବର୍ତ୍ତନ ଆସିଲା ? ଅଶୋକଙ୍କ ଆଗରୁ ବି ତ ରାସ୍ତା ଥିବ – ସେଗୁଡ଼ିକ ପଛେ ମାଟିର ହୋଇଥାଉ । ଅଶୋକଙ୍କ ରାସ୍ତା ସହ ଏଗୁଡ଼ିକର କି ସମ୍ପର୍କ ? ଯେଉଁଠି ନା କୃଷି ହେଉଥିଲା, ନା ଲୋକ ସଭ୍ୟ ଥିଲେ, ସେହି ଇଲାକାକୁ ନିଜ ନିୟନ୍ତ୍ରଣକୁ ନେବା ପାଇଁ ସେଠାକୁ ରାସ୍ତା ସବୁ ବନାଯାଇଥିଲା କି ଆଉ ?



ଏମିତିକା ଆହୁରି କେତେ କେତେ ପ୍ରଶ୍ନ ଉଠେ । ମୁଁ ତ ମୌର୍ଯ୍ୟ ସମାଜ ବା ରାଜନୀତି ବିଷୟରେ କିଛି ବି ଜାଣେ ନାହିଁ । ଅଥଚ ମୋ ମନରେ ଏତେ ପ୍ରଶ୍ନ ଆସୁଛି ଓ ଉତ୍ତର ପାଉନାହିଁ ! ତେବେ ଇତିହାସ ଜାଣିବାବାଲାଙ୍କ ମନ ତ ପ୍ରଶ୍ନରେ ଭାରି ହୋଇପଡୁଥିବ !

କିଏ ଯଦି ଅଶୋକଙ୍କ ସମୟର ଜଣେ ଲୋକଙ୍କୁ କହେ ଯେ " ଆପଣ ରାସ୍ତା ବନାଇଥିଲେ ", ତା' ହେଲେ ତାଙ୍କୁ କେତେ ଅଡୁଆ ଓ ଅଖାଡୁଆ ଲାଗିବ । ଏସବୁ ପ୍ରଶ୍ନର ଉତ୍ତର କାହିଁକି ଇତିହାସ ବହିରେ ଲେଖାଯାଇନାହିଁ ? ବରଂ ଅନେକ ଦିଗକୁ ଲୁଚାଇ ରଖାଯାଇ କେବଳ ଅତିରଞ୍ଜିତ କରି ଲେଖାଯାଇଛି । ଜଣେ ଆଗ୍ରହୀ ପାଠକ ସତ ଇତିହାସଟିକୁ ନା' କେବେ ପଢ଼ିବାକୁ ପାଇବ, ନା କେବେ କାହାକୁ ପଚାରି ବୁଝିପାରିବ ନା' ନିଜେ ଖୋଜିପାରିବ ।

ଏ ସବୁ ଭାବି ଭାବି ମୁଁ ଚାଲିଥାଏ – କାହାକୁ ପଚାରିବି ଭାବି ପାରୁ ନ ଥାଏ । ଦୂରରୁ ଗାଁର ବତୀଆଲୁଅ ଦେଖାଗଲା । ଗାଁ ପାଖରେ ପହଞ୍ଚିଲା କ୍ଷଣି ମୋତେ ଜୋର୍ ଭୋକ ଲାଗିଲା । ମୁଁ ରାସ୍ତା କଥା କିଛି ସମୟ ପାଇଁ ଭୁଲି ଯାଇଥିଲି ।

ତଥାପି ସେ ପ୍ରଶ୍ନଗୁଡ଼ିକ ଏବେ ବି ତା' ନିଜ ଜାଗାରେ ରହିଛି ।

